# ଅମର ଶହୀଦ
# ଗ୍ରନ୍ଥମାଳା






ଗୁରୁଜୀ ବୁକ୍ ଷ୍ଟଲ

ଝାଞ୍ଜିରୀମଙ୍ଗଳା, କଟକ-୯

# ଅମର ଶହୀଦ ଗ୍ରନ୍ଥମାଳା —୩

ଲେଖକ :
କୃତ୍ତିବାସ ନାୟକ, ଏମ୍. ଏ. ( ଗବେଷକ )

ପ୍ରକାଶକ :
ଶ୍ରୀନିବାସ ଗୁରୁ
ଗୁରୁଜୀ ବୁକ୍‌ଷ୍ଟଲ
କଟକ-୯

ମୁଦ୍ରଣ :
ଗୁରୁଜୀ ପ୍ରିଣ୍ଟର୍ସ
ଝାଞ୍ଜିରିମଙ୍ଗଳା, କଟକ-୯

ପ୍ରଥମ ସଂସ୍କରଣ :
୧୯୮୭

ମୂଲ୍ୟ : ଟ ୪-୦୦ ମାତ୍ର

# AMARA SAHEED GRANTHA MALA-3

By : **Kruttibas Nayak,** M. A.

Publisher : **Gurujee Book Stall**
Cuttack-9

Printer :**Gurujee Printers**
Cuttack-9

1st Edition : **1987**

Price Rs : **4-00**

# ଉତ୍ସର୍ଗ

ସ୍ୱାଧୀନତା ଆନ୍ଦୋଳନ ରୂପକ ଜାତୀୟ ମହାଯୁଦ୍ଧରେ ଆତ୍ମବଳୀ ଦେଇଥିବା ଅଗଣିତ ମହାନ୍ ଶହୀଦମାନଙ୍କ ପବିତ୍ର ସ୍ମୃତି ଉଦ୍ଦେଶ୍ୟରେ······



# ସୂଚୀ








ଯେଉଁମାନେ ବ୍ୟକ୍ତିଗତ ସ୍ୱାର୍ଥ ତ୍ୟାଗ କରି, ଜୀବନକୁ ବାଜି ଲଗାଇ ଦେଶ, ଜାତି ପାଇଁ ଆତ୍ମବଳି ଦିଅନ୍ତି, ସେମାନଙ୍କୁ ଶହୀଦ କୁହାଯାଏ । ଆମ ଦେଶ ଭାରତ ବର୍ଷ ଇଂରେଜ ଶାସନ ପୂର୍ବରୁ ଖଣ୍ଡ-ବିଖଣ୍ଡ ହୋଇ ବିଭିନ୍ନ ଶାସକମାନଙ୍କ ଦ୍ୱାରା ଶାସିତ ହୋଇଛି । ସେହି ସମସ୍ତ ମଧ୍ୟରେ ଦେଶ ଓ ଜାତି ପାଇଁ ଯେ, କେହି ଜୀବନୋତ୍ସର୍ଗ କରି ନାହାନ୍ତି, ସେ କଥା ଠିକ୍ ନୁହେଁ ।

ପ୍ରବଳ ପରାକ୍ରମୀ ଇଂରେଜ ଜାତିର ଶାସନ ଫଳରେ ଆମେ ଯେ କେବଳ ନିଜସ୍ୱ ହରାଇଛନ୍ତି ଓ ଲାଞ୍ଛିତ ହୋଇଛନ୍ତି, ସେ କଥା ବି ସମ୍ପୂର୍ଣ୍ଣ ଠିକ୍ ନୁହେଁ । ଇଂରେଜ ଶାସନ ଫଳରେ "ଆମେ ସବୁ ଭାରତୀୟ ଗୋଟିଏ ଜାତି—ଗୋଟିଏ ମାଆର ସନ୍ତାନ, ଭାରତ ଗୋଟିଏ ଦେଶ" ହେବା ସମ୍ଭବ ହୋଇପାରିଛି ।

୧୮୫୭ ମସିହାର ସିପାହୀ ବିଦ୍ରୋହକୁ ଐତିହାସିକମାନେ ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମ ଭାବରେ ଗ୍ରହଣ କରିଛନ୍ତି । ତଥାପି ଏଥିରେ ମତଭେଦ ଦେଖାଯାଏ । ସେ ଯାହା ହେଉ—ସିପାହୀ ବିଦ୍ରୋହରେ ପ୍ରାଣତ୍ୟାଗ କରିଥିବା ବୀରମାନଙ୍କୁ ଶହୀଦ ହିସାବରେ ସମ୍ମାନ ଦିଆଯାଏ ।

ଭାରତର ପ୍ରଥମ ଶହୀଦ କିଏ ? ଏହା ଏକ ପ୍ରଶ୍ନବାଚୀ । ୧୮୫୭ ମସିହାର ସିପାହୀ ବିଦ୍ରୋହ ସାରି-

ଦେଶରେ କ୍ଷିହରଣ ସୃଷ୍ଟି କରିପାରିଥିଲା । ଅଧିକାଂଶ ରାଜ୍ୟର ସ୍ୱାଧୀନତା ସଂଗ୍ରାମୀ ଏଥିରେ ଯୋଗ ଦେଇଥିଲେ । ତେଣୁ ଏହା ସ୍ୱାଧୀନତା ସଂଗ୍ରାମର ଯୋଗ୍ୟତା ହାସଲ କରିପାରିଲା ।

୧୮୫୭ ମସିହାର ବହୁ ପୂର୍ବରୁ ଦେଶପ୍ରେମୀ ଜଗନ୍ ସେଠ୍ ଇଂରେଜମାନଙ୍କର ଚକ୍ରାନ୍ତ ଏବଂ ଯୋଜନାକୁ ଠିକ୍ ଭାବେ ଜାଣିପାରିଥିଲେ । ଜଗନ୍ ସେଠ୍‌ଙ୍କର ପୂରା ନାମ ଥିଲା—ଜଗନ୍ ସେଠ୍ ରାମଜୀ ଦାସ ଗୁଡ଼ୱାଲା ।

ସେତେବେଳେ ତାଙ୍କର ବ୍ୟବସାୟ ୟୁରୋପ ଆଫ୍ରିକାର ବହୁ ଦେଶରେ ଚାଲୁଥିଲା । ସେ ଥିଲେ, ଭାରତର ଜଣେ ବିଶିଷ୍ଟ କୋଟିପତି । ଦିଲ୍ଲୀର ବାଦଶାହା ବାହାଦୁର ଶାହାଙ୍କର ସେ ଥିଲେ ଅତି ଘନିଷ୍ଠ ବନ୍ଧୁ । ରାଜ୍ୟଶାସନ କାର୍ଯ୍ୟ ପାଇଁ ବାଦଶାହା ଜଗନ୍ ସେଠ୍‌ଙ୍କ ଠାରୁ ଲକ୍ଷ ଲକ୍ଷ ଟଙ୍କା ଧାର ଓ ଋଣ ସୂତ୍ରରେ ଆଣୁଥିଲେ । ଜଗନ୍ ସେଠ୍‌ଙ୍କର ଅପୂର୍ବ ବ୍ୟକ୍ତିତ୍ୱ, ଅମାପ ଦେଶପ୍ରେମ, ଅଗାଧ ସମ୍ପତ୍ତି ତାଙ୍କୁ ଯଥେଷ୍ଟ ସମ୍ମାନ ଦେଉଥିଲା ।

ଥରେ ଜଗନ୍ ସେଠ୍ ୟୁରୋପରେ ଥିବା ସମୟରେ ଭାରତ ବିରୋଧୀ ଚକ୍ରାନ୍ତ ବିଷୟରେ ଶୁଣିବାକୁ ପାଇଲେ । ହଠାତ୍ ସେ ନିଜ ଦେଶକୁ ଫେରି ଆସି, ତାଙ୍କର ଅନ୍ତରଙ୍ଗ ବନ୍ଧୁ ଦିଲ୍ଲୀର ବାଦଶାହା ବାହାଦୁରଶାହାଙ୍କ ଗୁପ୍ତ ମନ୍ତ୍ରଣା କଲେ । ବନ୍ଧୁଙ୍କ ସହଯୋଗରେ ବିରାଟ ଯୋଜନାର ପରିକଳ୍ପନା କରାଗଲା । ଭାରତର ଦେଶୀୟ ରାଜାମାନଙ୍କ ସହ ଯୋଗାଯୋଗ କରାଗଲା । ସମସ୍ତ ଦିଗରୁ ସାହାଯ୍ୟ ସହଯୋଗ ମିଳିବାର ପ୍ରତିଶ୍ରୁତି ପାଇ, ଜଗନ୍ ସେଠ୍‌ଙ୍କ ନେତୃତ୍ୱରେ ଇଂରେଜମାନଙ୍କ ସହ ସମ୍ମୁଖ ଯୁଦ୍ଧ ପାଇଁ ବାଦଶାହା ଡାକରା ଦେଲେ ।



ଅର୍ଜୁନଙ୍କ ଆକ୍ରମଣରେ ଇଂରେଜ ଅଫିସର ଅସ୍ତବ୍ୟସ୍ତ ହୋଇପଡ଼ିଲେ । କେତେକ ଇଂରେଜ ସୈନ୍ୟ ଓ ସାହେବ ମୃତ୍ୟୁର ଶିକାର ହେଲେ । ସାରା ଭାରତ ହୁଲୁସ୍ଥୁଲ ହୋଇ ପଡ଼ିଲା । ଯୋଜନାବଦ୍ଧ ଭାବେ ସଙ୍ଗଠିତ ଭାରତୀୟ ମୁକ୍ତିବାହିନୀ—ଦେଶୀୟ ରାଜାଙ୍କ ରଣକୌଶଳ ଓ ଗୁପ୍ତ ଷଡ଼ଯନ୍ତ୍ର ବିଷୟରେ ଇଂରେଜମାନେ ଅନ୍ତ ପାଉ ନଥା'ନ୍ତି ।

ଆମ ଦେଶରେ ଶିଖି-ମନାଇଙ୍କ ପରି ଦେଶଦ୍ରୋହୀର ଅଭାବ ନାହିଁ । ସାମାନ୍ୟ ଅର୍ଥର ପ୍ରଲୋଭନରେ ନିଜ ଦେଶ ନିଜ ଜାତିକୁ ଶତ୍ରୁ ହାତରେ ଟେକି ଦେବାକୁ ନୀଚମନା ବି ଏଠାରେ ଜନ୍ମ ନିଅନ୍ତି । ଫୁଲ ବଗିଚାରେ ବିଛୁଆତି ବେଳେ ବେଳେ ଜନ୍ମେ ।

ସେହିପରି ଜଣେ ଦେଶଦ୍ରୋହୀ ଭାରତୀୟ ସୁବିଧା ସୁଯୋଗ ଦେଖି ଇଂରେଜ ଅଫିସରଙ୍କୁ ଷଡ଼ଯନ୍ତ୍ର ବିଷୟରେ ସମସ୍ତ ବୁଝାଇ ଦେଲା । କ୍ଷଣିକ ଭିତରେ ସବୁ ଓଲଟ ପାଲଟ ହୋଇଗଲା । ସବୁ ଯୋଜନା ଭଣ୍ଡୁର ହୋଇଗଲା । ଶହ ଶହ ଦେଶପ୍ରେମୀ ବନ୍ଦୀ ହେଲେ । ଦେଶୀୟ ରାଜା ଓ

ବାଦଶାହଙ୍କ ସହ ଜଗନ୍ ସେଠଙ୍କୁ ଅକଥନୀୟ ଅତ୍ୟାଚାର ସହିବାକୁ ପଡ଼ିଲା । ଦେଶଦ୍ରୋହୀଙ୍କ ଯଦି ଆଉ ଗୋଟିଏ ଦିନ ଡେରି କରିଥାଆନ୍ତା, ଭାରତବର୍ଷକୁ ସ୍ୱାଧୀନ ହେବା ପାଇଁ ଏତେ ବର୍ଷ ଅପେକ୍ଷା କରିବାକୁ ପଡ଼ି ନଥା'ନ୍ତା ।

ବାରବର୍ଷ ପରେ ମହାମାନ୍ୟ ଜଗନ୍ ସେଠ୍‌ଙ୍କୁ ଦିଲ୍ଲୀର ଚାନ୍ଦିନୀଚୌକ ଛକଠାରେ ଶିକାରୀ କୁକୁରମାନଙ୍କ ଦ୍ୱାରା କାମୁଡ଼ାଇ କାମୁଡ଼ାଇ ରକ୍ତାକ୍ତ ଅବସ୍ଥାରେ ଫାଶୀକାଠରେ ଝୁଲାଇ ଦେଲେ ।

ବହୁ ଅର୍ଥ, ଉଚ୍ଚ ପଦବୀର ପ୍ରଲୋଭନରେ ସେ ଭୁଲି ନଥିଲେ । ଫାଶୀ ପୂର୍ବରୁ ସେ ଶେଷ ଭିକ୍ଷା ମାଗିଥିଲେ ମୃତ୍ୟୁ । ଫାଶୀଖୁଣ୍ଟରେ ଠିଆ ହୋଇ ନିର୍ଭୀକ ଭାବେ କହିଥିଲେ—"ମୁଁ ଦେଶ ପାଇଁ ପ୍ରାଣ ଉତ୍ସର୍ଗ କରୁଛି । ଏ କଥା ନିଶ୍ଚିତ ଯେ, ଆମର ଲୁହଲହୁ ମିଶା ଭୂଇଁରୁ ଯେଉଁ ବୀର ସନ୍ତାନ ଜନ୍ମନେବେ, ସେମାନେ ଇଂରେଜ ସାମ୍ରାଜ୍ୟକୁ ରସାତଳଗାମୀ କରାଇବେ, ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ ।

ଜଗନ୍ ସେଠ୍ ଫାଶୀଖୁଣ୍ଟରେ ଝୁଲି ପଡ଼ିଲେ, ତାଙ୍କର ନିର୍ଭୀକ ଓ ଦୃଢ଼ ଦେଶପ୍ରେମ ଦେଖି ଇଂରେଜମାନେ ଆଶ୍ଚର୍ଯ୍ୟ ହୋଇଗଲେ ।

ତେଣୁ ଜଗନ୍ ସେଠ୍ ଭାରତର 'ପ୍ରଥମ ଶହୀଦର' ଆସନ ଦାବୀ କରିବା ଯଥାର୍ଥ । ସେ ହେଉଛନ୍ତି—ପ୍ରଥମ ସ୍ୱାଧୀନତା ସଂଗ୍ରାମୀ । ପ୍ରଥମ ଶହୀଦ ।

ଜୟହିନ୍ଦ୍ !






ବାଲେଶ୍ୱର ଜିଲ୍ଲାର ଇରମ୍ ଗାଁ'ର ଦୋଳ ମେଲଣ ପଡ଼ିଆ ଆମ୍ବତୋଟା । ଜଟି ଜଟିଆ ଅନ୍ଧାରରେ ମିଞ୍ଜି-ମିଞ୍ଜିଆ ଆଲୁଅ ଦିଶୁଥିବା ଲଣ୍ଠନ ଧରି କେତେ ଜଣ ଲୋକ କ'ଣ ଖୋଜୁଥା'ନ୍ତି । ହଠାତ୍ ସେମାନେ ଚମକି ପଡ଼ିଲେ—ତାଙ୍କର ପାଦ ଅଟକିଗଲା । ସେଇଠି ଗୁଳିମାଡ଼ ଖାଇ ଚିରଦିନ ପାଇଁ ଆଖି ବୁଜିଥିଲା—"ବକୁଳି ।"

ତା' ଦେହର ରକ୍ତରେ କଅଁଳିଆ ଘାସମୂଳ ସନ୍ତେଇ ଯାଇଥାଏ । ଅଖି ଦୁଇଟା ମୁଦ ହୋଇ ଆସିଛି । ବଡ଼ ଭୟଙ୍କର ସେଇ ଦୃଶ୍ୟ ।

ଏମିତ କାହିଁକି ହେଲା ?

ଜାତୀୟ କବି ବାଞ୍ଛାନିଧିଙ୍କର ଘର ଥିଲା—ଏଇ ଇରମ୍ ଅଞ୍ଚଳରେ । ସେ ସ୍ୱାଧୀନତା ଆନ୍ଦୋଳନରେ ଜଣେ ବିଶିଷ୍ଟ ନେତାଥିଲେ । ତାଙ୍କର ଦେଶାତ୍ମବୋଧ ସଙ୍ଗୀତ ଆମ ରାଜ୍ୟରେ ଅପୂର୍ବ ଜାଗରଣ ସୃଷ୍ଟି କରୁଥିଲା । କବିଙ୍କ ବ୍ୟକ୍ତିତ୍ୱ ଓ ଦେଶପ୍ରେମ ଫଳରେ ସେ ଅଞ୍ଚଳରେ ସ୍ୱାଧୀନତାର ଆନ୍ଦୋଳନ ଲାଗି ରହିଥାଏ ।

କବିଙ୍କର ମୃତ୍ୟୁପରେ ତାଙ୍କ ନେତୃତ୍ୱରେ ଗଠିତ ମୁକ୍ତିବାହିନୀ ବହୁ ଅସୁବିଧାର ସମ୍ମୁଖୀନ ହେଉଥିଲେ

ବାଣୀ ହେଲା ମଧ୍ୟ, ସେମାନେ ଦୁଇଟି ଭାଗରେ ବିଭକ୍ତ ହେଲେ । ଗୋଟିଏ 'ଶାନ୍ତିସେନା' ଅନ୍ୟଟି 'ବାନରସେନା' । 'ଶାନ୍ତି ସେନା'ର 'କର ବା ମର' ।

'ବାନର ସେନା'ର ବାଣୀ ହେଲା—'ମରବା ମାର' । ସେମାନେ ଇରମ୍‌ର ଜମିଦାର ଓ ଯୁନୁସ୍ନନ ସଦ୍ଧପତିଙ୍କୁ ଖଜଣା ନଦେବା ପାଇଁ ଲୋକମତ ସୃଷ୍ଟି କଲେ । ଜମିଦାର ଓ ସଦ୍ଧପତି ପୋଲିସ ଡକାଇ ବାସୁଦେବପୁର ଥାନାରେ ୧୪୪ ଧାରା ଜାରି କଲେ । ଜନମେଳ ହେତୁ ବିପଦର ଆଶଙ୍କା କରି ପୁଲିସ୍ ବନ୍ଧୁକ, ଗୁଳିସହ ଇରମ୍ ଜମିଦାରଙ୍କ ଘରେ ଡେରା ପକାଇଲେ ।



ପୁଲିସ୍‌ର ଜିଦ୍ ସେମାନେ ହତ୍ୟା ସମିତ କରାଇ ଦେବେ ନାହିଁ । ସେତେଣେ ସ୍ୱାଧୀନତା ସଂଗ୍ରାମୀମାନଙ୍କର ଜିଦ୍, ଯେ କୌଣସି ପ୍ରକାରେ ରକ୍ତ ଦେଲେ ବ ସତ୍ୟ କରି ଗାନ୍ଧିଜୀଙ୍କ ଜୟଧ୍ୱନି ଦେବେ ।

ଏହାପରେ ଉଭୟ ସେନା ମିଶି ହଜାର ହଜାର ଲୋକଙ୍କୁ ଆମ୍ବଗଛ ତଳେ ବସାଇ ମହାତ୍ମା ଗାନ୍ଧୀ, ଗୋପବନ୍ଧୁ ଓ ବାଞ୍ଛାନିଧିଙ୍କ ବାଣୀ ଶୁଣାଇ ବକ୍ତୃତା ଦେଲେ । ପୁଲିସ୍ ବାହିନୀ ପଡ଼ିଆକୁ ଲମ୍ବିଥିବା ୩ଟି ରାସ୍ତାରୁ ଫାଙ୍କା ଆବାଜ କଲେ । ଆଶ୍ଚର୍ଯ୍ୟର କଥା, ଗୁଳିର ଶବ୍ଦକୁ ଖାତିର ନ କରି ପ୍ରଜାମାନେ ଗୁଳି ଶବ୍ଦକୁ ତାଳଦେଇ ଉଚ୍ଚ ସ୍ୱରରେ ଜୟଧ୍ୱନି ଦେଉଥା'ନ୍ତି ।



ଲୋକଙ୍କ ଭିତରେ ଉତ୍ତେଜନା ବୃଦ୍ଧି ପାଇବାରୁ ଗୁଡ଼ମ୍ ଗୁଡ଼ମ୍ ହୋଇ ବନ୍ଧୁକ ଗର୍ଜି ଉଠିଲା । ଜାଲିଆନା-ୱାଲାବାଗ୍ ହତ୍ୟାକାଣ୍ଡପରି ଅନ୍ଧକୂପ ହତ୍ୟା ଚାଲିଲା । ତଥାପି ଇରମ୍‌ର ସ୍ୱାଧୀନତା ସଂଗ୍ରାମୀ ନେତାମାନେ ବଜ୍ର ଗମ୍ଭୀର କଣ୍ଠରେ "ମହାତ୍ମା ଗାନ୍ଧୀଙ୍କର ଜୟ-ବନ୍ଦେ ମାତରମ୍-ଇନ୍‌କିଲାବ-ଜିନ୍ଦାବାଦ" ଧ୍ୱନି ଦେଉଥା'ନ୍ତି ।

କେତେ ନେତା, କେତେ ବୀର ସେଇ ମେଲଣ ପଡ଼ିଆରେ ଚାଲି ପଡ଼ିଲେ । ସେମାନଙ୍କ ମଧ୍ୟରେ ବାଜି ଥିଲା ସର୍ବ କନିଷ୍ଠ—ସେ ଶିଶୁ ଶହୀଦ ଭାବେ ଓଡ଼ିଶାର ନାମ ରଖିଗଲା ।

ବାଜୀ ନାମ ତା'ର ସାର୍ଥକ ହେଲା । କ୍ଷଣିକ ଆଲୋକ ଦେଖାଇ ସେ ବିଜୁଳିର ଧର୍ମ ରକ୍ଷା କଲା । ସ୍ୱାଧୀନତାର ସେତୁବନ୍ଧ ନିର୍ମାଣରେ ଗୁମ୍ଫିତ ଭାବେ ବାଜୀ ଅମର ହୋଇ ରହିଛି—ରହିଥିବ ।

ଜୟ ହିନ୍ଦ୍ !







ହଜାର ହଜାର ମାଇଲ ଦୂରରୁ ଅଳ୍ପ କେତେକଜଣ ଇଂରେଜ ଆସି ଆମ ଦେଶର କୋଟି କୋଟି ଲୋକଙ୍କୁ ଶାସନ କରୁଥିଲେ । ଏହା କପରି ସମ୍ଭବ ହେଉଥିଲା, ସେ କଥା ଶୁଣିଲେ ଆଶ୍ଚର୍ଯ୍ୟ ଲାଗେ । ଆମରି ଦେଶର କେତେକଜଣ ଦେଶଦ୍ରୋହୀ, ଅର୍ଥଲୋଭୀ ଉପାଧି ଓ ପ୍ରଶଂସାର ମୋହରେ ବଶବର୍ତ୍ତୀ ହୋଇ ଇଂରେଜଙ୍କୁ ଶାସନ କାର୍ଯ୍ୟରେ ସାହାଯ୍ୟ କରୁଥିଲେ ।

ଏମାନଙ୍କର ସଂଖ୍ୟା ଏତେ ବେଶିଥିଲା ଯେ, ସେମାନେ ପ୍ରତି ମୁହୂର୍ତ୍ତରେ ସମଗ୍ର ଦେଶକୁ ନଚେଇ ଦେଇପାରୁଥିଲେ । ବିଦ୍ରୋହୀ, ବିପ୍ଳବୀ ଓ ଦେଶପ୍ରେମୀମାନଙ୍କର ବିରାଟ ବିରାଟ ଯୋଜନାକୁ ମୁହୂର୍ତ୍ତକ ମଧ୍ୟରେ ଧୂଳିସାତ୍ କରି ଦେଉଥିଲେ ।

ଏହି ଦେଶଦ୍ରୋହୀମାନେ ତାଙ୍କର ହୃଦୟରୁ ସ୍ନେହ, ମମତା, ପ୍ରେମପରି ମୂଲ୍ୟବାନ୍ ଗୁଣକୁ ଦୂରେଇ ଦେଇଥିଲେ । ସେମାନେ ଅର୍ଥ ଓ ଉପାଧି ଆଶାରେ ଅନ୍ଧ ହୋଇ ଯାଇଥିଲେ । ଏ' ଦେଶ ଏ' ମାତୃଭୂମି ତାଙ୍କର ଏ କଥା ସେ ସହଜରେ ଭୁଲି ଯାଇଥିଲେ । ତୋଷାମଦ କରିବା ଥିଲା ଏମାନଙ୍କର ମୁଖ୍ୟ କାମ ।

ମଧୁବାବୁଙ୍କ ଭାଷାରେ—

"ଖୋଷାମଦଖିଆର କୁକୁର ପ୍ରକୃତି—
ଅଇଁଠା ପତ୍ରରେ ଧ୍ୟାନ ।"

ଆମ ଦେଶକୁ ଇଂରେଜ କବଳରୁ ରକ୍ଷା କରିବା ପାଇଁ ଯେଉଁ ସବୁ ଚେଷ୍ଟା କରାଯାଇଥିଲା, ତାହା ଯଦି ସଫଳ ହୋଇପାରିଥା'ନ୍ତା, ତେବେ ଇଂରେଜମାନେ ଏତେ ଦିନ ଆମକୁ ଶାସନ କରିବାର ସୁଯୋଗ ପାଇପାରି ନଥା'ନ୍ତେ ।

ଦେଶପ୍ରେମୀମାନେ ଯଦି ବଗିଚାର ତୁଳସୀ ଗଛ ହୁଅନ୍ତି, ଦେଶଦ୍ରୋହୀମାନେ ବିଛୁଆତି । ଏ ବିଛୁଆତି ଗଛକୁ କେହି ଚାହାଁନ୍ତି ନାହିଁ ତେବେ ସେମାନେ ଆପେ ଆପେ ଉଠି ମଣିଷର କେବଳ ଅପକାର କରନ୍ତି ।

ଇଂରେଜମାନେ ଏକ ଚତୁର ଜାତି ଭାବେ ସୁପରିଚିତ । କଣ୍ଟାରେ କିପରି କଣ୍ଟାକୁ କଢ଼ାଯାଏ, ତା'ର କୌଶଳ ତାଙ୍କୁ ଭଲଭାବେ ଜଣାଥିଲା । ତେଣୁ ସେ ଆମର ଦେଶର ଲୋକଙ୍କୁ ଟଙ୍କା-ପଇସାର ମୋହ ଦେଖାଇ କାବୁ କରି ନେଇଥିଲେ । ତାଙ୍କର ଦ୍ୱାରା ସାହାଯ୍ୟ ପାଇ ଆମକୁ ଶାସନ କରୁଥିଲେ ।

କଟକ ଜିଲ୍ଲାର ଜଗତ୍‌ସିଂହପୁର ଥାନାରେ ସାରଦା ମହାପାତ୍ରଙ୍କ ଘର । ବାପା ତାଙ୍କର ଇଂରେଜ ସରକାରଙ୍କର ଜଣେ ବିଶ୍ୱସ୍ତ ଉଚ୍ଚପଦସ୍ଥ ଅଫିସର । ତାଙ୍କ ଆଖିରେ ଅର୍ଥ ଓ ଉପାଧିର ନିଶା ଭରିଥିଲା । ନିଜ ମାତୃଭୂମି ଯେ, ମା'ଆ ସଙ୍ଗେ ସମାନ, ଏକଥା ତାଙ୍କର ଖିଆଲ ନଥିଲା । ଇଂରେଜଙ୍କ ଆଦେଶକୁ ଅକ୍ଷରେ ଅକ୍ଷରେ ପାଳନ କରୁଥିବାରୁ ସେ

ଏତେ ବଡ଼ ପଦବୀରେ ରହିପାରିଥା'ନ୍ତି । ବିଦ୍ରୋହୀ, ବିପ୍ଳବୀମାନଙ୍କୁ ସେ କଳେବଳେ କୌଶଳେ ଧରାଇ ଦେବାକୁ ଦୃଢ଼ ପ୍ରତିଜ୍ଞ । ଏଥିପାଇଁ ତାଙ୍କୁ ମୋଟା ପରିମାଣର ପୁରସ୍କାର ମଧ୍ୟ ମିଳିବାର ଆଶାଥିଲା ।

ପଙ୍କରୁ ପଦ୍ମ ଫୁଟିଲାପରି, ଦେଶଦ୍ରୋହୀ ଅଫିସରଙ୍କ କୋଳରେ ଦେଶପ୍ରେମୀ ସାରଦାଙ୍କର ଜନ୍ମ ହୋଇଥିଲା । ବାପ-ପୁଅ ଦୁହିଁଙ୍କର ଚରିତ୍ର, ପ୍ରକୃତି, ମତ ସମ୍ପୂର୍ଣ୍ଣ ଭିନ୍ନ ଥିଲା ।

ବାପା ଉଚ୍ଚପଦସ୍ଥ ଅଫିସର ଥିବାରୁ ପୁଅ ଇଂରେଜଙ୍କର କେତେକ ଗୁପ୍ତତଥ୍ୟ ସହଜରେ ସଂଗ୍ରହ କରିନେଇ ପାରୁଥିଲେ । ଫଳରେ ସେ ଇଂରେଜ ସରକାରଙ୍କୁ ଏ ଦେଶରୁ ହଟାଇବା ପାଇଁ ଏକ ସୁଚିନ୍ତିତ ଯୋଜନା ପ୍ରସ୍ତୁତ କରିଥିଲେ ।

ସମସ୍ତଙ୍କ ଅଜଣାତରେ ସେ ସୁନ୍ଦରବନର ଏକ ଗୁପ୍ତ ସ୍ଥାନରେ ବିରାଟ ଶକ୍ତିଶାଳୀ ବୋମା ତିଆରି କାରଖାନା ବସାଇଥିଲେ । ଏହି କାରଖାନାର ନିର୍ଦ୍ଦେଶକ ଓ ମୁଖ୍ୟ ଥିଲେ ନିଜେ ସାରଦା ମହାପାତ୍ର । ପୁଅର କାମ ବିଷୟରେ ବାପା କିଛି ଜାଣିପାରୁ ନଥିଲେ ।

ପୁଅ ପ୍ରତି ବାପାଙ୍କର ସନ୍ଦେହ ବଢ଼ିଲା । ସେ କପଟତାର ଆଶ୍ରୟ ନେଇ, ଇଂରେଜଙ୍କୁ ଘୃଣା କରୁଥିବାର ଛଳନା କରି, ପୁଅଠାରୁ ସବୁ କଥା ସଂଗ୍ରହ କରିବାକୁ

ଚେଷ୍ଟା କଲେ । କେଉଁ ଏକ ଦୁର୍ବଳ ମୁହୂର୍ତ୍ତରେ ସାରଦା ବୋମା କାରଖାନା କଥା କହିଦେଲେ । ପ୍ରେମିକଙ୍କ ବାଧ୍ୟ ଶିକାର ପାଇଲା ପରି ଦେଶଦ୍ରୋହୀ ବାପାଙ୍କର ଦେହରେ ଚମକ ସୃଷ୍ଟି ହେଲା । ମନଟା ଆନନ୍ଦରେ କୁରୁଳି ଉଠିଲା ।

ତୁଅ ଯାହା କରିଛ, ତାହାକୁ ସମର୍ଥନ କରିବାର ଅଭିନୟ କରି, କାରଖାନା ଥରେ ବୁଲି ଦେଖି ଆସିବାକୁ ବାପା କହିଲେ । ବାପାଙ୍କର ଅନୁରୋଧକୁ ସାରଦା ଖୁବ୍ ସରଳ ଓ ସହଜରେ ରକ୍ଷା କରିବାକୁ ସ୍ୱୀକୃତ ଦେଲେ ।

ସାରଦା ଜାଣିଥିଲେ, ବାପା ହେଲେ ବି ସେ ପୋଲିସ୍ । ସମ୍ପୂର୍ଣ୍ଣ ଭାବେ ବିଶ୍ୱାସ କରିବାଟା ଠିକ ହେବ ନାହିଁ । ତଥାପି ବାପାଙ୍କର ଅନୁରୋଧକୁ ଏଡ଼ାଇ ନପାରି ଗୋଟିଏ ସର୍ତ୍ତ ରଖିଲେ ଯେ, କାରଖାନା ବୁଲେଇ ଦେଖାଇ ଦେବେ କିନ୍ତୁ ସେଠାକୁ ଯିବା ବାଟ ଦେଖାଇବେ ନାହିଁ । ସେଥିରେ ବାପା ତାଙ୍କର ରାଜି ହେଲେ ।

ସାରଦାଙ୍କର ଅତି ବିଶ୍ୱସ୍ତ ଡ୍ରାଇଭର ଜିପ୍ ଧରି ପ୍ରସ୍ତୁତ ହେଲା । ଅଫିସରଙ୍କ ଆଖିରେ କଳାପଟି ବନ୍ଧା ହେଲା । ସାରଦା ପାଖରେ ବସିଲେ । ଜିପ୍‌ଟି ସୁନ୍ଦରବନର ଗୁପ୍ତସ୍ଥାନରେ ଥିବା ବୋମା କାରଖାନାରେ ପହଞ୍ଚିଲା ।

ବିଶ୍ୱାସଘାତକ ପୋଲିସ୍ ଅଫିସର କୌଶଳରେ କୌଣସି ମଞ୍ଜି ବୁଣି ବୁଣି ଦେଇ ଯାଉଥିଲେ । ତାହା ସାରଦାଙ୍କୁ ଅଜଣା ଥିଲା ।

ବୋମା କାରଖାନା ଦେଖି ଅଫିସର ବହୁତ ଖୁସି ହେବାର ଛଳନା କରି ସାରଦା ଓ ତାଙ୍କର ବନ୍ଧୁମାନଙ୍କୁ ପ୍ରଶଂସା କରିଥିଲେ । ଏ କାମରେ ସେ ସହଯୋଗ କରିବାର

ମିଥ୍ୟା ପ୍ରତିଶ୍ରୁତି ମଧ୍ୟ ଦେଇଥିଲେ । କାରଖାନା ଦେଖି ଅଫିସର ସେଦିନ ବହୁତ ମନକଷ୍ଟରେ ଫେରିଥିଲେ ଓ ଏହାର ପରବର୍ତ୍ତୀ ପଦକ୍ଷେପ କ'ଣ ନେବାକୁ ହେବ, ଚିନ୍ତା କରୁଥିଲେ ।

ସାରଦା ସେଦିନ କାରଖାନାରେ ଉପସ୍ଥିତ ଥାଆନ୍ତି । ଗୁପ୍ତଚର ଖବର ଦେଲା । ସାରଦାଙ୍କ ବାପା ବହୁତ ଇଂରେଜୀ ସୈନ୍ୟ ଧରି ବୋମା କାରଖାନାକୁ ଘେରାଉ କରିଛନ୍ତି ।

ଏଭଳି ପରିସ୍ଥିତିରେ ସାରଦା କ'ଣ କରିବେ କିଛି ସ୍ଥିର କରିପାରିଲେ ନାହିଁ । ତାଙ୍କର ଦେଶପ୍ରେମୀ ବନ୍ଧୁମାନେ ତାଙ୍କୁ କ'ଣ ଭାବିବେ ? ପୋଲିସ୍ ଅଫିସର ଯେ, ତା'ର ବାପା । ସେ ବାପାଙ୍କୁ କାରଖାନା ଦେଖାଇ କେଡ଼େ ଭୁଲ୍ ନ କରିଛି ? ତାଙ୍କର ମୁଣ୍ଡ ଖରାପ ହୋଇଗଲା ।

ଏତିକିବେଳେ ସାରଦାଙ୍କର ବାପା ଆସି ତାଙ୍କ ସାମନାରେ ପହଞ୍ଚି ମୁରୁକି ମୁରୁକି ହସୁଥିଲେ । ବୋମା କାରଖାନାରେ ଥିବା ବିପ୍ଳବୀ ବନ୍ଧୁମାନଙ୍କୁ ପୋଲିସ ଗିରଫ କରିନେଲେ ।

ଅଫିସରଙ୍କ ଆଖି ଦୁଇଟା ନିଆଁପରି ଜଳୁଥିଲା । ବୋମା ତିଆରି ସରଞ୍ଜାମକୁ ପୋଲିସ୍ ନେଇଗଲେ ।

ସାରଦାଙ୍କୁ ଶେଷରେ ଖୋଜା ପଡ଼ିଲା । ପୋଲିସ୍ ଭାବିଲେ ସେ କୁଆଡ଼େ ଖସି ଚାଲିଯାଇଛି । ଅଫିସର କହିଲେ—ସାରଦାକୁ ଧରି ନ ପାରିଲେ ସବୁ ଚେଷ୍ଟା, ସବୁ ଆଶା ପଣ୍ଡ ହୋଇଯିବ । ଯେମିତି ହେଲେ ସାରଦାକୁ ଖୋଜି ବାହାର କରିବାକୁ ହେବ ।

ମୁହୂର୍ତ୍ତକ ମଧ୍ୟରେ ପୋଲିସ୍ ବନ୍ଧି-ବାବନ୍ଧି ଝୋଳି ପକାଇଲେ । ସେତେବେଳକୁ ସାରଦା ଆଉ ଜୀବନରେ ନ ଥିଲା । ସେ ତ ଠକି ଯାଇଛି, ହାରିଯାଇଛି, ଏ ଜୀବନ ରଖି କାହାକୁ ଦେଖାଇବ ?

ଧନ୍ୟ ତୁମେ ସ୍ୱାଭିମାନୀ ସାରଦା ! ତୁମେ ଆଜି ଶହୀଦ୍ ହୋଇ ଚିର ପୂଜ୍ୟ ହୋଇଛ । କିନ୍ତୁ ତୁମର ବାପାଙ୍କର ଉପାଧି କେତେଦିନ ରହିଲା କୁହତ ?

ଜୟହିନ୍ଦ୍ !







ଅନେକ ସନ୍ତାନ ମଲା ପରେ ଦୁଃଖୀ ଖୁଦୀରାମ ହେଉଛନ୍ତି ଶେଷ ସନ୍ତାନ । ତାଙ୍କର ଆଉ ଭଉଣୀଟିଏ ଥାଏ । ଖୁଦୀରାମଙ୍କର ଛଅ ବର୍ଷ ବେଳକୁ ବାପା ମାଆଙ୍କର ମୃତ୍ୟୁ ହେଲା । ଖୁଦୀରାମ ଏ ବିରାଟ ଦୁନିଆଁରେ ନିହାତି ଏକା ହୋଇଗଲେ । ତାଙ୍କର ବଡ଼ ଭଉଣୀ ଅନୁରୂପା ଖୁଦୀରାମଙ୍କୁ ନେଇ ନିଜ ପାଖରେ ରଖିଲେ ଏବଂ ମଣିଷ କରିବାର ଦାୟିତ୍ୱ ନେଲେ । ମା'ର ସ୍ନେହ ଦେଲେ ।

ଭଉଣୀର ସିନା ମଣିଷ କରିବାର ଇଚ୍ଛା, କିନ୍ତୁ ଖୁଦୀରାମର ଭାଗ୍ୟ ଅଲଗା । ଇଚ୍ଛା ଓ ଭାଗ୍ୟ ସମାନ ନୁହେଁ । ସ୍କୁଲ ଯାଇ ମଧ୍ୟ ଖୁଦୀରାମ ପାଠ ପଢ଼େ ନାହିଁ । ଏତେ ଛୋଟ-ବେଳରୁ ହିଁ ସେ ଭାରତବର୍ଷ କଥା ଚିନ୍ତା କରୁଥାଏ । ଗୋରା ଶାସକ ବିରୁଦ୍ଧରେ ଯୁଦ୍ଧ କରିବାକୁ ପ୍ରସ୍ତୁତ ହେଉଥାଏ ।

ବଙ୍କିମଚନ୍ଦ୍ର ଚଟ୍ଟୋପାଧ୍ୟାୟଙ୍କ ଲିଖିତ 'ଆନନ୍ଦମଠ' (ବନ୍ଦେ ମାତରମ୍) ବହି ଏବଂ ରାଣୀ ଝାନ୍ସୀ, ତାନ୍ତିଆ ଟୋପିଙ୍କର ଅପୂର୍ବ ସାହସ ଖୁଦୀରାମଙ୍କୁ ପ୍ରେରଣା ଦେଇଥିଲା । ନିଜର ସ୍ୱାର୍ଥକୁ ଜଳାଞ୍ଜଳି ଦେଇ ସୁଶୃଙ୍ଖଳିତ ଆନୁଷ୍ଠାନିକ ମାଧ୍ୟମରେ ଇଂରେଜ ଶାସନକୁ ଧ୍ୱଂସ କରିବାକୁ ହେବ । ଠିକ୍ ଏଇ ସମୟରେ ୧୯୦୫ ମସିହାରେ ଲର୍ଡ଼ କର୍ଜନ ବଙ୍ଗଳାକୁ ଦୁଇ ଭାଗରେ ଭାଗ କରିଦେଲେ ।

ଦେଶ ଭାଗ କରିବା ମୂଳରେ ଇଂରେଜମାନଙ୍କର ଉଦ୍ଦେଶ୍ୟ ଥିଲା ବିଦ୍ରୋହୀମାନଙ୍କୁ ଭାଗ ଭାଗ କରି ଶାସନ

କରିବା, କାରଣ ଭାରତର ସ୍ୱାଧୀନତା ସଂଗ୍ରାମ ପାଇଁ ୧୮୮୫ ମସିହାରେ "ଭାରତୀୟ ଜାତୀୟ କଂଗ୍ରେସ" ନାମରେ ଏକ ଅନୁଷ୍ଠାନ ଗଢ଼ା ହୋଇଥିଲା । ଭାରତର ବିଭିନ୍ନ ସ୍ଥାନରୁ ବଙ୍ଗ ଭଙ୍ଗ ଆଇନକୁ ବିରୋଧ କଲେ ମଧ୍ୟ ଇଂରେଜ ସରକାର କିଛି ଶୁଣିଲେ ନାହିଁ । ଫଳରେ ଯତୀନ୍ଦ୍ର ନାଥ ମୁଖୋପାଧ୍ୟାୟ ଉଗ୍ରପନ୍ଥା ଗ୍ରହଣ କରି ସେପ୍ଟେମ୍ବର ୯ ତାରିଖ ୧୯୧୫ ମସିହାରେ ଇଂରେଜମାନଙ୍କ ସହିତ ବାଲେଶ୍ୱରର (ଚଷାଖଣ୍ଡ) ଯୁଦ୍ଧ କଲେ, ଏବଂ ନିହତ ହେଲେ ।

ଏହିମିତି ଅନେକ ରୋମାଞ୍ଚକର ଘଟଣା ସ୍ୱାଧୀନତା ଆନ୍ଦୋଳନକୁ କେନ୍ଦ୍ର କରି ଭାରତର ଚାରିଆଡ଼େ ସଙ୍ଘଟିତ ହୋଇଛି ।

ଖୁଦୀରାମ 'ବନ୍ଦେ ମାତରମ୍'କୁ ଚାରିଆଡ଼େ ପ୍ରଚାର କଲେ ଏବଂ ଇଂରେଜ ଶାସନକୁ ସମାଲୋଚନା କଲେ । ବଙ୍ଗ ଭଙ୍ଗ ଆନ୍ଦୋଳନ ଓ ସ୍ୱାଧୀନତା ସଂଗ୍ରାମକୁ କେନ୍ଦ୍ର କରି ବହୁ ବଙ୍ଗାଳୀ ବିପ୍ଳବ କରୁଥିଲେ ଏବଂ ସେମାନଙ୍କର ବିଚାର ହେଉଥିଲା । ବିଚାର ଦେଖିବାକୁ ମଧ୍ୟ ଅନେକ ଲୋକ ଜମା ହେଉଥିଲେ ।

ଥରେ ଗୋରା ପୋଲିସ ବିନା କାରଣରେ ମଧ୍ୟ କେତେକ ନିର୍ଦ୍ଦୋଷ ଦର୍ଶକଙ୍କୁ ଲାଠି ପ୍ରହାର କଲା । ଏ ଦୃଶ୍ୟକୁ ସୁଶୀଲ କୁମାର ସେନ୍ ନାମକ ଏକ ପନ୍ଦରବର୍ଷର ଯୁବକ ସହ୍ୟ କରି ନପାରି ପୋଲିସ ଉପରକୁ ବାଘ ଭଳି ଝାମ୍ପି ପଡ଼ିଲା ଏବଂ ନାକ ଉପରକୁ ମୁଥାଏ ମାରିଲା । ପୋଲିସ ହାତରୁ ଲାଠି ଛଡ଼ାଇ ପୋଲିସକୁ ମଧ୍ୟ ଭଲ ଭାବରେ ମାରିଲା । ଫଳରେ ପୋଲିସ ଦେହରୁ ନାକରୁ ରକ୍ତ ବାହାରିଲା । ସଙ୍ଗେ ସଙ୍ଗେ ପୋଲିସ ସୁଶୀଲକୁ ଗିରଫ କଲେ ଏବଂ କିଙ୍ଗସ୍ ଫୋର୍ଡ଼ଙ୍କ



ଆଦେଶ ଅନୁଯାୟୀ ସୁଶୀଲଙ୍କୁ ଲଙ୍ଗଳା କରି ପନ୍ଦର ଥର ଚାବୁକ ପ୍ରହାର ହେଲା ।

ଏ ଘଟଣାକୁ ଖୁଦୀରାମ ବୋଷ ସହ୍ୟ କରିପାରିଲେ ନାହିଁ । ବିନା କାରଣରେ ଗୋରା ପୋଲିସ ନିର୍ଦ୍ଦୋଷ ଲୋକଙ୍କୁ ଲାଠି ମାଡ଼ ଦେବାରୁ ସିନା ସୁଶୀଲ ପୋଲିସକୁ ମୁଥା ମାରିଲା । ଇଂରେଜମାନେ ଆମକୁ ଶାସନ କରୁଥିଲେ ବୋଲି କ୍ରୀତଦାସ ଠାରୁ ବଳି ହୀନମାନ କରୁଥିଲେ । ବର୍ତ୍ତମାନ ଖୁଦୀରାମଙ୍କର ସମସ୍ତ ରାଗ କିଙ୍ଗସ୍ ଫୋର୍ଡ଼ ମାଜିଷ୍ଟ୍ରେଟଙ୍କ ଉପରେ ଅଜାଡ଼ି ହୋଇ ପଡ଼ିଲା । ପ୍ରତିଜ୍ଞା କଲେ କିଙ୍ଗସ୍ ଫୋର୍ଡ଼ଙ୍କୁ ପ୍ରାଣରେ ମାରି ଦେବାକୁ । ବ୍ରିଟିସ୍ ସରକାର କିନ୍ତୁ ଏ କଥା ଜାଣିପାରି କିଙ୍ଗସ୍ ଫୋର୍ଡ଼ଙ୍କୁ ମୁଜାଫରପୁରକୁ ବଦଳି କରିଦେଲେ ।

କଲିକତାରେ ବିପ୍ଳବୀମାନଙ୍କ ଆଲୋଚନା ପରେ କିଙ୍ଗସ୍ ଫୋର୍ଡଙ୍କୁ ହତ୍ୟା କରିବାର ଦାୟିତ୍ୱ ଶେଷରେ ଖୁଦୀରାମଙ୍କ ଉପରେ ପଡ଼ିଲା । ସେତେବେଳେ ଖୁଦୀରାମଙ୍କର

ବୟସ ୧୯ ବର୍ଷ । ଏତେ କମ୍ ବୟସରେ ଜଣେ ଯୁବକ ଦେଶ ପାଇଁ କେତେ ଦୁଃସାହସିକ କାର୍ଯ୍ୟ କରିବାକୁ ଯାଉଛନ୍ତି, ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ପ୍ରତିଶୋଧ ନେବା ହିଁ ଥିଲା ତାଙ୍କର ପ୍ରତିଜ୍ଞା । ସେ ଜାଣିଥିଲେ ଧରା ପଡ଼ିଲେ ଗୋରା ଶାସକ ତାଙ୍କୁ ନିଶ୍ଚୟ ଫାଶୀ ଦେବେ, କିନ୍ତୁ ତଥାପି ସେ ଜୀବନକୁ ଭ୍ରୂକ୍ଷେପ କଲେ ନାହିଁ ।

ଖୁଦୀରାମ ଏବଂ ପ୍ରଫୁଲ୍ଲ କୁମାର ଚାକି କିଙ୍ଗସ୍ ଫୋର୍ଡ଼ଙ୍କୁ ହତ୍ୟା କରିବାକୁ କଲିକତାରୁ ମୁଜାଫରପୁର ଗଲେ । ହାତରେ ତାଙ୍କର ପିସ୍ତଲ ଏବଂ ବୋମା । ସେମାନେ କିଙ୍ଗସ୍ ଫୋର୍ଡ଼ଙ୍କ ବଙ୍ଗଳା ପାଖରେ ଲୁଚି ରହିଲେ । ସେ ଦିନଥାଏ ଏପ୍ରିଲ ୩୦ ତାରିଖ, ୧୯୦୮ ମସିହା । ଯେତେବେଳେ ଦେଖିଲେ ବଙ୍ଗଳାରୁ ଏକ ଘୋଡ଼ାଗାଡ଼ି ବାହାରକୁ ଆସୁଛି ।

ଖୁଦୀରାମ ହଠାତ୍ ଗାଡ଼ିକୁ ଲକ୍ଷ୍ୟ କରି ବୋମା ଫିଙ୍ଗିଲେ । ଭୀଷଣ ଶବ୍ଦ ହେଲା—ଧୂଆଁରେ ଚାରିଆଡ଼ ଭର୍ତ୍ତି ହୋଇଗଲା, କିନ୍ତୁ ଦୁଃଖର କଥା, କିଙ୍ଗସ୍ ଫୋର୍ଡ଼ ନ ମରି ତାଙ୍କର ଜଣେ ବନ୍ଧୁ କେନେଡ଼ି, ତାଙ୍କର ସ୍ତ୍ରୀ, ଝିଅ ଏବଂ ଚାକରର ମୃତ୍ୟୁ ହେଲା । କିଙ୍ଗସ୍ ଫୋର୍ଡ଼ ବଙ୍ଗଳାରେ ଥିଲେ । ଖୁଦୀରାମ ଲୋକ ନ ଦେଖି ଗାଡ଼ିକୁ ହିଁ ବୋମା ଫିଙ୍ଗିଥିଲେ ।

ବୋମା ଫିଙ୍ଗି ସାରିବା ପରେ "କିଏ ମଲା"କୁ ଅପେକ୍ଷା ନକରି ଖୁଦୀରାମ ପବନ ବେଗରେ ଦୌଡ଼ିବାକୁ ଆରମ୍ଭ କଲେ ଏବଂ ରାତିସାରା ରେଲଲାଇନ୍ କଡ଼ରେ ଧାଇଁ ଧାଇଁ ୨୫ ମାଇଲ ରାସ୍ତା ଅତିକ୍ରମ କଲେ । ଶେଷରେ

ଡେଭନୀ ଷ୍ଟେସନବର୍ତ୍ତୀ ଏକ ଜଳଖିଆ ଦୋକାନରେ ପହଞ୍ଚିଲେ । ସେତେବେଳକୁ ସକାଳ ହୋଇ ଯାଇଥାଏ । ଏହା ମଧ୍ୟରେ କେନେଡ଼ିଙ୍କ ହତ୍ୟା ଘଟଣା ପ୍ରଚାରିତ ହୋଇ ଯାଇଥାଏ ଏବଂ ଦୋକାନରେ ଏ କଥା ଆଲୋଚନା ହେଉଥିବାର ଖୁଦୀରାମ ଶୁଣିଲେ ।

ଖୁଦୀରାମ ଅତ୍ୟନ୍ତ କ୍ଲାନ୍ତ ଜଣା ପଡ଼ୁଥା'ନ୍ତି । ପେଟରେ କିଛି ନାହିଁ, ଭୀଷଣ ଶୋଷ, ରୁକ୍ଷ ଚେହେରା । କୌତୁହଳ ବଶତଃ ନିଜର ପରିବେଶକୁ ନ ବିଚାରି ହଠାତ୍ କହି ପକାଇଲେ—"କ'ଣ କିଙ୍ଗସ୍ ଫୋର୍ଡ଼ ମରି ନାହାନ୍ତି ।" ଏତକ ପ୍ରଶ୍ନ ସେଠାରେ ଥିବା ଲୋକଙ୍କ ମନରେ ସନ୍ଦେହ ସୃଷ୍ଟି କଲା ଏବଂ ଖୁଦୀରାମ କ୍ଲାନ୍ତ ଓ ଅପରିଚିତ ଥିବାରୁ ହୋଟେଲବାଲା ସନ୍ଦେହ କରି ଗୋରା ପୁଲିସଙ୍କୁ ଖବର ଦେଲା । ଖବର ପାଇ ଗୋରା ପୁଲିସ ପହଞ୍ଚିଗଲେ । ଖୁଦୀରାମ ପାଣି ପିଇବାକୁ ମୁହଁ ପାଖକୁ ଗ୍ଲାସ ଉଠାଇଥିବାବେଳେ କାହାର କୋଡ଼ା ଆଘାତରେ ଅପ୍ରସ୍ତୁତ ହୋଇ ପଡ଼ିଲେ । ହାତରୁ ଗ୍ଲାସ ଖସି ପଡ଼ିଲା । ପାଣି ମଧ୍ୟ ପିଇ ପାରିଲେ ନାହିଁ । ପୁଲିସ ଗିରଫ କଲା । ନିଜର ପିସ୍ତଲ ମଧ୍ୟ ପକେଟରୁ ବାହାର କରିପାରିଲେ ନାହିଁ ।

କଲିକତାରେ ତାଙ୍କର ବିଚାର ହେଲା । କିନ୍ତୁ ସେ ବିଚାର ଥିଲା ଏକ ପ୍ରହସନ । ଗୋରାଜଜ୍ଜ ଖୁଦୀରାମଙ୍କୁ



ମୃତ୍ୟୁଦଣ୍ଡ ଦେଲା । ହାଇକୋର୍ଟକୁ ଅପିଲ ହେଲେ ମଧ୍ୟ ତାହା ଖାରଜ ହେଲା । ଅଗଷ୍ଟ ୧୯ ତାରିଖ ୧୯୦୮ ମସିହାରେ ଖୁଦୀରାମଙ୍କୁ ଫାଶୀ ଦିଆଗଲା । ସେତେବେଳେ ହାତରେ ଥିଲା ତାଙ୍କର ଭଗବତ୍ ଗୀତା ଏବଂ ଓଠରେ ଥିଲା 'ବନ୍ଦେ ମାତରମ୍' । ସେ ହସି ହସି ମୃତ୍ୟୁବରଣ କରି ଭାରତମାତାର ମୁଖୋଜ୍ଜ୍ୱଳ କଲେ ।

ଜୟହିନ୍ଦ୍ !








ମହାତ୍ମା ଗାନ୍ଧୀଙ୍କ ଡାକରା ଯେତେବେଳେ ଭାରତର ସବୁ କୋଣରୁ ପ୍ରତିଧ୍ୱନିତ ହେଲା, ଆମ ଓଡ଼ିଶାର ବଣ-ପାହାଡ଼ ଘେରା କୋରାପୁଟ ଜିଲ୍ଲାର ଆଦିବାସୀ ପଲ୍ଲୀ ତେନ୍ତୁଲିଗୁମ୍ମାରୁ ହୁଙ୍କାର ଦେଲେ ଲକ୍ଷ୍ମଣ ନାଏକ । ଓଡ଼ିଶାର ଆବାଳ-ବୃଦ୍ଧବନିତାଙ୍କ କଣ୍ଠରୁ ଆଜି ବି ଶୁଣାଯାଏ—

ଲକ୍ଷ୍ମଣ ନାଏକରେ ଲକ୍ଷ୍ମଣ ନାଏକ—
ଦେଶ ପାଇଁ ଫାଶୀଖୁଣ୍ଟେ
ଝୁଲିଗଲୁ ବେକରେ—
ଲକ୍ଷ୍ମଣ ନାଏକ ।। ୧ ।।

ଲକ୍ଷ୍ମଣ ନାଏକ ନାମଟି ଆଜି କେବଳ କୋରାପୁଟର ଆଦିବାସୀମାନଙ୍କ ହୃଦୟରେ ନୁହେଁ, ସମଗ୍ର ଭାରତର ଜନତାଙ୍କ ହୃଦୟରେ ଲିପିବଦ୍ଧ ହୋଇ ରହିଯାଇଛି । ଯୁଗ ଯୁଗ ପାଇଁ ମଧ୍ୟ ରହିଥିବ ।

“ପଥର ତଳୁ ଘାସ ମୁଣ୍ଡ ଟେକିବା ପରି ମଣିଷର ପ୍ରତିଭା କୌଣସି ବାଧା ବନ୍ଧନକୁ ମାନେ ନାହିଁ ।” ଆଦିବାସୀ ଭୂମିଆଁ ପରିବାରରେ ପ୍ରଥମ ପୁତ୍ର ହୋଇ ୧୮୯୯ ନଭେମ୍ବର ମାସ ୨୨ ତାରିଖରେ ଜନ୍ମଗ୍ରହଣ କରିଥିଲେ ।

ପିଲାବେଳୁ ଲକ୍ଷ୍ମଣ ଥିଲେ ସ୍ୱାଧୀନଚେତା । ତାଙ୍କର ବ୍ୟକ୍ତିତ୍ୱ ଓ ସୁଗୁଣଗୁଡ଼ିକ ପାଇଁ ଅଳ୍ପଦିନ ମଧ୍ୟରେ ସେ କୋରାପୁଟର ଆଦିବାସୀ ଅଞ୍ଚଳରେ ନେତା ଭାବେ ପରିଚିତ ହୋଇଥିଲେ । ଲକ୍ଷ୍ମଣ ଯାହା କହୁଥିଲେ—ସବୁ ଆଦିବାସୀଙ୍କର ସେଥିରେ ସମ୍ମତି ଥିଲା ।



ଆନ୍ଧ୍ର ପ୍ରଦେଶର ବିଶିଷ୍ଟ ସଂଗ୍ରାମୀ ସୀତାରାମ ରାଜୁଙ୍କର ମେଳି ଫଳରେ ବଣ ଜଙ୍ଗଲ ଘେରା କୋରାପୁଟରେ ଏହାର ପ୍ରଭାବ ପଡ଼ୁଥାଏ, ସେ ଏହି ମେଳିରେ ଯୋଗ ଦେବାକୁ ଇଚ୍ଛୁକ ଥାଆନ୍ତି । ଏଥିପାଇଁ ହୁଏତ ସଶସ୍ତ୍ର ବିପ୍ଳବ ଦରକାର ହୋଇପାରେ, ତେଣୁ ସେ ବନ୍ଧୁକ ଚାଳନା ଶିକ୍ଷା କଲେ । ଆଦିବାସୀ ଅଞ୍ଚଳରେ ଡାକ୍ତରୀ ଚିକିତ୍ସାର ସୁବିଧା ନଥାଏ, ତେଣୁ ସେ ଗାଉଁଲି ବୈଦ୍ୟଗିରି, ଝାଡ଼ଣ, ଫୁଙ୍କାଣ, ଚେରମୂଳିରେ ଚିକିତ୍ସା କରି କିପରି ଲୋକମାନଙ୍କର ସେବା କରିବାକୁ ହେବ, ସେଥିରେ ଲାଗି ପଡ଼ିଲେ ।

ପୁଣି ଗାରେଡ଼ି ଓ ଔଷଧପତ୍ର ବିଦ୍ୟାରେ ପାରଦର୍ଶିତା ଅର୍ଜ୍ଜନ କରି ଅହ୍ନର ଲୋକପ୍ରିୟ ହୋଇଗଲେ ।

ଗାଆଁର ନାୟକ ତାଙ୍କର ବାପା । ସେ ବାପାଙ୍କ ସହ ଜୟପୁର ରଜାଙ୍କ ଘରକୁ, ରାଂଗିରର ଅମିନ ଅଫିସକୁ ଓ ମାତିଲକୁ ନାନା କାର୍ଯ୍ୟରେ ଆସନ୍ତି । ଏହିପରି ଯିବା ଆସିବା ଫଳରେ ସେ ସହରର ଓଡ଼ିଆ ଭାଷା ଶିଖିଗଲେ ।

୧୯୩୬ ମସିହାର କଥା । ଓଡ଼ିଶା ସ୍ୱତନ୍ତ୍ର ରାଜ୍ୟ ଗଠିତ ହେଲା । ଓଡ଼ିଶାର ଲାଟ ହେଲେ—ସାର୍ ଜନ୍ ହବାକ୍ । ଅଳ୍ପଦିନ ଭିତରେ ସେ କୋରାପୁଟ ଗସ୍ତରେ ଆସିଲେ । ପଟୁଆର, ଶିକାର ପ୍ରସ୍ତୁତ ହେଲା—ଏଣେ କାହାର ପୁଷ ମାସ ତ ଆଦିବାସୀଙ୍କର ସର୍ବନାଶ ହେଲା ।

ଲାଟଙ୍କୁ ଖୁସି କରାଇବା ପାଇଁ ଛୋଟ କର୍ମଚାରୀମାନେ ଆଦିବାସୀଙ୍କ ଉପରେ ଯାହା ଜୋର ଜବରଦସ୍ତି ଅତ୍ୟାଚାର କରିବା ସମ୍ଭବ, ମନଇଚ୍ଛା ହରିଲୁଟ୍ କରିଗଲେ । ଲକ୍ଷ୍ମଣ ବିବ୍ରତ ହୋଇ ପଡ଼ିଲେ ।

ଲକ୍ଷ୍ମଣଙ୍କ ଚେଷ୍ଟାରେ ସମାଜରେ ଆଦିବାସୀଙ୍କ କରୁଣ କାହାଣୀ ପ୍ରକାଶ ହେଲା । ତଦନ୍ତ ପରେ ଏହା ସତ୍ୟ ପ୍ରମାଣିତ ହେବାରୁ ସମସ୍ତଙ୍କୁ କ୍ଷତିପୂରଣ ମିଳିଲା ।

ଲକ୍ଷ୍ମଣଙ୍କର ଜୀବନରେ ଏକ ବିରାଟ ଜୟ ହେଲା ।

ଦିନକୁ ଦିନ ଲକ୍ଷ୍ମଣ ଯେତେ ଲୋକପ୍ରିୟ ହେଉଥା'ନ୍ତି, ସେ ମନପ୍ରାଣ ଦେଇ ଲୋକଙ୍କ ସେବାରେ ସେତେ ଲାଗୁଥାଆନ୍ତି । ତା' ସଙ୍ଗେ ସଙ୍ଗେ କଂଗ୍ରେସର

ବାଣୀ ପ୍ରଚାର, ସୂତାକଟା, ଏକତା ଇତ୍ୟାଦିର ଅର୍ଥକୁ ଜନସାଧାରଣଙ୍କ ଆଗରେ ବୁଝାଉଥା'ନ୍ତି ।

୧୯୩୯ ଦ୍ୱିତୀୟ ମହାଯୁଦ୍ଧ ସମୟ । ଭାରତରେ ସ୍ୱାଧୀନତା ସଂଗ୍ରାମୀମାନେ ଚାରିଆଡ଼େ ସତ୍ୟାଗ୍ରହ କରୁଥା'ନ୍ତି । ମାତଲିରେ ସତ୍ୟାଗ୍ରହ କରି ଲକ୍ଷ୍ମଣ ଜେଲ ବରଣ କଲେ ।

୧୯୪୨ ଅଗଷ୍ଟ ୨୧ ତାରିଖରେ 'କର ବା ମର' ନୀତି ଏବଂ ଗାନ୍ଧିଜୀଙ୍କୁ ମୁକ୍ତ କରିବା ପାଇଁ ଚାରିଆଡ଼େ ପଞ୍ଚଆର ବାହାରିଥାଏ । ଲକ୍ଷ୍ମଣ ଗାଁକୁ ଗାଁ ବୁଲି ସଂଗ୍ରାମୀ-ମାନଙ୍କୁ ଧରି ମାତଲି ହାଟରେ ପହଞ୍ଚିଲେ । ଅପୂର୍ବ ସେ ଦୃଶ୍ୟ । ତ୍ରିରଙ୍ଗ ପତାକାର ବନ୍ୟା । ଲକ୍ଷ୍ମଣ ଭାଷଣ ଦେଲେ । ସେ ଥିଲେ ପ୍ରକୃତ ନେତା । ଲକ୍ଷ୍ମଣ ସମସ୍ତ କର୍ମୀଙ୍କୁ ଡାହାଣ ପାଦ ଆଗକୁ ବଢ଼ାଇବାକୁ କହି ବୁଝାଇ ଦେଲେ, ଏ ପାଦ ଆଉ ପଛକୁ ଫେରିବ ନାହିଁ । ଏଇ ଆମର ଶପଥ ।



ତା'ପରେ ପଲ୍ଟୁଆର ଗ୍ଚଲଲ୍ ମାଡଲ ଥାନା ଆଗକୁ । ଏହାର ମୁକାବଲା କରିବା ପାଇଁ ପୂର୍ବରୁ ବହୁ ଲାଠି, ବନ୍ଧୁକ, ଗୁଳିଗୁଳା ଧରି ପୁଲିସ ପ୍ରସ୍ତୁତ ଥାଆନ୍ତି ।

'ବନ୍ଦେ ମାତରମ୍' ଧ୍ୱନିରେ ଚତୁର୍ଦ୍ଦିଗ କମ୍ପି ଉଠିଲା । ବାଧା ନ ମାନି କର୍ମୀମାନେ ଥାନା ଉପରେ ତ୍ରିରଙ୍ଗା ପତାକା ଉଡ଼ାଇବା ପାଇଁ ମାଡ଼ି ଗ୍ଚଲଲେ । ପୁଲିସ୍‌ଙ୍କର ଲାଠି ମାଡ଼ ବି ଗ୍ଚଲଲା । ଲକ୍ଷ୍ମଣ ବାରମ୍ବାର ସାବଧାନ କରାଇ ଦେଉଥା'ନ୍ତି । ଆମେ ମାଡ଼ ଖାଇବା ପଛେ ହାତ ଉଠାଇବା ନାହିଁ । ଏତେ ବଡ଼ ପଲ୍ଟୁଆରକୁ ସାମାନ୍ୟ କେତେଜଣ ପୋଲିସ ବା ଲାଠିରେ ସମ୍ଭାଳିବେ କେମିତି ?

ଥାନା ଅଫିସରଙ୍କ ଇଙ୍ଗିତରେ ନେତା ଲକ୍ଷ୍ମଣଙ୍କୁ ଥାନା ସାମନାକୁ ଟାଣିନେଇ ଖୁବ୍ ପିଟିଲେ । ଦୁଇଜଣ ମାଡ଼ି ବସିଲେ । ଆଉ ଜଣେ ତାଙ୍କର ନଖକୁ ପୋଡ଼ିବାରେ ଲାଗିଲା । ସେ ଯନ୍ତ୍ରଣାରେ ଛଟପଟ ହେଉଥା'ନ୍ତି ।

ଲକ୍ଷ୍ମଣଙ୍କୁ ମାଡ଼ ଦେଲେ ଜନତା ଛିନ୍ନଛତ୍ର ହେବେ ବୋଲି ମନେ କରିଥିଲେ । ଫଳ ଓଲଟା ହେଲା, କର୍ମୀମାନେ ଉତ୍ତ୍ୟକ୍ତ ହୋଇ ଥାନା ଭିତରକୁ ପଶିଲେ । ଧସ୍ତାଧସ୍ତିରେ କେତେ ଜଣ କନେଷ୍ଟବଲ ଓ ପିଅନ ତଳେ ପଡ଼ିଗଲେ । ପୁଲିସର ଗୁଳି ଗ୍ଚଲନା ଆରମ୍ଭ ହୋଇଗଲା । ଟିମସ୍ ଗୁଡ଼ାଇ ଲାଙ୍ଗ ଭୂମିଆ ତ୍ରିରଙ୍ଗପତାକା ଧରି ଛାତ ଉପରକୁ ଚଢ଼ିଲେ । ପୁଲିସର ଗୁଳି ମାଡ଼ରେ ସେ ପତାକା ସହ ତଳେ ପଡ଼ିଗଲେ । ନକୁଳ ମାଡ଼ କାର୍ମୀଙ୍କର ମଧ୍ୟ ସମାନ ଅବସ୍ଥା ହେଲା । ଏହା ମଧ୍ୟରେ ଆଘାତ ପାଇ ଫରେଷ୍ଟ ଗାର୍ଡ଼ ଜି. ରାମାସ୍ବାମୀ ପଡ଼ିଗଲା । କେତେକ କହନ୍ତି ଗୁଳି ବାଜିଗଲା ।

ପ୍ରବଳ ଗୁଳି ଚାଳନାରେ ନିରସ୍ତ୍ର ଜନତା ଛତ୍ରଭଙ୍ଗ ଦେଲେ । ହାତ ନ ଉଠାଇ କେତେ ବୀର ପୁଙ୍ଗବ ଶହୀଦ ହୋଇଗଲେ ।

ଜଣେ ପୁଲିସ ବନ୍ଧୁକର ବୟନେଟ୍‌ରେ ଲକ୍ଷ୍ମଣଙ୍କ ମୁହଁକୁ ଆଘାତ କରିବାରୁ ସେ ଚେତା ହରାଇଲେ । ମୃତ୍ୟୁ ଘଟିଛି, ମନେ କରି ଲକ୍ଷ୍ମଣଙ୍କୁ ନର୍ଦ୍ଦମାରେ ଫୋପାଡ଼ି ଦେଲେ ।

ବର୍ଷା, ଅନ୍ଧାର ରାତିର ଶୀତଳ ପବନରେ ଲକ୍ଷ୍ମଣଙ୍କ ଚେତା ଫେରିଲା । ବହୁ କଷ୍ଟ ଓ ଯନ୍ତ୍ରଣାରେ ଲକ୍ଷ୍ମଣ ଉଠି ଚାଲିଲେ । କେତେ ଚିନ୍ତା କେତେ ଭାବନା । ସେହି ରାତିରେ ୩୦ ମାଇଲ ଦୂର ଜୟପୁରକୁ ଚାଲିଗଲେ । କର୍ମୀଙ୍କ ସେବାରେ ବଞ୍ଚିଲେ ।

ଏଣେ ଗାର୍ଡ଼ ରାମାୟାର ମୃତ୍ୟୁ ଲାଠି ପ୍ରହାରରେ ହୋଇଛି ବୋଲି ପୁଲିସମାନେ ଡାକ୍ତର ସାର୍ଟିଫିକେଟ କରିଦେଲେ । ଶେଷରେ ଏହି ଲାଠି ପ୍ରହାର ନେତା ଲକ୍ଷ୍ମଣଙ୍କର ଥିଲା ବୋଲି ମିଥ୍ୟାରେ ପ୍ରମାଣ କରାଗଲା ।



ବିଚାର ହେଲା—ଲକ୍ଷ୍ମଣଙ୍କୁ ୧୯୪୩ ମାର୍ଚ୍ଚ ୨୯ ତାରିଖରେ ହତ୍ୟା ଅଭିଯୋଗରେ ଫାଶୀ ଦିଆଗଲା ।

ଜୟହିନ୍ଦ !



# ଶହୀଦ ଅଜିମୁଲ୍ଲା

ଇଂରେଜ କବଳରୁ ଦେଶ ମାତୃକାକୁ ମୁକ୍ତ କରିବା ପାଇଁ ବହୁ ଦେଶପ୍ରେମୀ ଜୀବନ ଦେଇଛନ୍ତି । ସ୍ୱାଧୀନତା ଆନ୍ଦୋଳନରେ ଜଗନ୍ ସେଠ୍ ପରି କୋଟିପତି ଆଉ ରାଜା-ବାଦ୍‌ଶାହ ଅଂଶ ଗ୍ରହଣ କରିଥିବା ସ୍ଥଳେ, ସାମାନ୍ୟ ଜଣେ ଚପରାସି ପିଲା କିପରି ଦେଶ ପାଇଁ ଧନ, ମନ, ସବୁ କିଛି ବିସର୍ଜନ କରିଥିଲା, ସେ ବିଷୟରେ ଚିନ୍ତା କଲେ ଆଶ୍ଚର୍ଯ୍ୟ ଲାଗେ । ଏହି ପିଲାଟି ଅତି ଗରିବ ମୁସଲମାନ ଘରେ ଜନ୍ମ ନେଇଥିବାରୁ ତା ସମ୍ପର୍କରେ ଅଧିକ ତଥ୍ୟ ସଂଗୃହୀତ ହୋଇପାରି ନାହିଁ । ତେଣୁ ତା ବିଷୟ ବହୁତ କମ୍ ଲୋକ ଜାଣିଛନ୍ତି ।

ଧନ ଅଭାବରୁ ଅଳ୍ପ ବୟସରୁ ସେହି ପିଲାଟି ଜୀବିକାର୍ଜନ ପାଇଁ ବାହାରି ପଡ଼ିଲା । ଜଣେ ଇଂରେଜ ଭଦ୍ରଲୋକ ତାଙ୍କ ଘରେ ଚୋଲହାକ କରିବା ପାଇଁ ପିଲାଟିଏ ଖୋଜୁଥିଲେ । ଅଳ୍ପ କେଇଟା ଦିନ ଭିତରେ ପିଲାଟି ସାହେବଙ୍କର ଚପରାସିବାର କାମ ମଧ୍ୟ କରିପାରିଲା । ପ୍ରଭୁଭକ୍ତ ଗରିବ ପିଲାଟି ପ୍ରତି ସାହେବ ଭାରି ପ୍ରସନ୍ନ ଥା'ନ୍ତି । ତାର ପଢ଼ାପଢ଼ିରେ ମଧ୍ୟ ସେ ସାହାଯ୍ୟ କଲେ । ଉଚ୍ଚାଭିଳାଷୀ ପିଲାଟି ଅଳ୍ପ ଦିନ ମଧ୍ୟରେ ହିନ୍ଦି, ଉର୍ଦ୍ଦୁ, ଇଂରେଜୀ ଓ ଫାର୍ସୀ ଭାଷାକୁ ଭଲ ଭାବେ ଶିଖିଗଲା ।

ଚପରାସି କାମ କରୁଥିବା ବେଳେ ପିଲାଟି ମନରେ ଦେଶପ୍ରୀତି ଜାଗରିତ ହେଲା । ସେ ମନେ ମନେ ଠିକ୍ କଲା—

ମୋତେ ମଧ୍ୟ ମାତୃଭୂମି ପାଇଁ କିଛି କରିବାକୁ ହେବ । ବେଳେ ବେଳେ ଏକା ଏକା ବସି ଭାବେ—ମୁଁ ତ ସାମାନ୍ୟ




ରୋଷେଇଆ କାମ କରୁଛି । ମୁଁ ବା କ'ଣ କରିପାରିବ ? କେତେ ଚିନ୍ତା, କେତେ କଥା ତା ମୁଣ୍ଡରେ ପଶେ । ମନ ଥିଲେ ଉପାୟ ଆସେ । ମହତ୍ ଉଦ୍ଦେଶ୍ୟରେ କିଛି କାମ କଲେ ଭଗବାନ ସର୍ବଦା ସହାୟ ହୁଅନ୍ତି । ଏ କଥା ସେ କହିଥିଲା ।

ରୋଷେୟା ଚାକିରୀ ଭିତରେ ସେ କିଭଳି ଗୁଡ଼ାଏ ପାଠ ପଢ଼ିଯିବ ଆଉ ବିଦେଶୀ ଭାଷା ଶିଖିଯିବ, ଏହା ଥିଲା ତାର ପ୍ରଥମ ଲକ୍ଷ୍ୟ । ସାହେବଙ୍କ ବସା ଘରକୁ ବହୁତ ବିଦେଶୀ ଲୋକ ଯାତାୟାତ କରୁଥିଲେ । ତେଣୁ ସେ ସହଜରେ ବିଦେଶୀ ଲୋକଙ୍କ ସହ ମିଶିବାକୁ ସୁବିଧା ପାଉଥିଲା । ଫଳରେ କେତେକ ବିଦେଶୀ ଭାଷା ଶିଖିବା ସଙ୍ଗେ ସଙ୍ଗେ ପିଲାଟି ଇଂରେଜମାନଙ୍କ କଥା କହିବାର ଢଙ୍ଗ, ମୌଳିକ ଆଦବ୍ କାଇଦା ଓ କେଉଁମାନଙ୍କ ସହ

କିଭଳି ବ୍ୟବହାର କରାଯାଏ, ଏ ସବୁ ଭଲ ଭାବେ ଶିଖିଗଲା ।

ପିଲାଟିର ମନ କଥା ମନରେ ଥାଏ । ହାତରେ କିଛି ପଇସା ରଖି ସେ ହଠାତ୍ ଦିନେ ରେଲୱେଇଆ ଚାକିରୀ ଛାଡ଼ି ଦେଇ କାନପୁରର ଗୋଟିଏ ବିଦ୍ୟାଳୟରେ ପାଠ ପଢ଼ିବା ଆରମ୍ଭ କରିଦେଲା । ଉଚ୍ଚ ଅଭିଳାଷୀ ପିଲାଟିକୁ ଭଗବାନ ସହାୟ ହେଲେ । ଜଣେ ମେଧାବୀ ଛାତ୍ର ଭାବେ ସେ ସୁନାମ ଅର୍ଜ୍ଜନ କଲା ।



ନିଜର ପଢ଼ାଶେଷରେ ସେ ପୁଣି ଦେଶ ପାଇଁ ଚିନ୍ତା କଲେ । ମନେ ମନେ ଠିକ୍ କଲେ, ଏକ ଆଦର୍ଶ ବିଦ୍ୟାଳୟ ଖୋଲି ମଣିଷ ତିଆରି କରାଇବେ । ନିଜ ଚେଷ୍ଟାରେ ସେ ବିଦ୍ୟାଳୟଟିଏ ବସାଇ ଚଳାଇଲେ । କିଛି ଦିନ ପରେ ତାଙ୍କୁ ସରକାରୀ ବିଦ୍ୟାଳୟରେ ଶିକ୍ଷାଦାନ କରିବାକୁ ସୁଯୋଗ ମିଳିଲା ।

କଥାରେ ଅଛି—"ଫୁଲ ଫୁଟିଲେ ବାସ ଚହଟେ ।" ଦେଶଭକ୍ତ ଶିକ୍ଷକଙ୍କର ଯେ ଗମ୍ଭୀର ଓ ଉଚ୍ଚ ଆଶା କଥା ନାନା ସାହେବଙ୍କ ଯୋଗ୍ୟ, ବିଦ୍ୱାନ୍, ବୀର ପୁରୁଷମାନଙ୍କୁ ଶ୍ରଦ୍ଧା ଓ ସମ୍ମାନ କରୁଥିଲେ । ଏଭଳି ଜଣେ ବିଚକ୍ଷଣ ମେଧାବୀ ଶିକ୍ଷକଙ୍କୁ ସେ ନିଜ ଦରବାରରେ ରଖିବାକୁ ଇଚ୍ଛା ପ୍ରକାଶ କଲେ ।

ଶୁଭ ଦିନ ଦେଖି ନାନାସାହେବ ଶିକ୍ଷକଙ୍କୁ ଦରବାରକୁ ଡାକି ନିଜର ପରାମର୍ଶଦାତା ଭାବେ ନିଯୁକ୍ତ ଦେଲେ । ନୂଆ ପରାମର୍ଶଦାତାଙ୍କର କାର୍ଯ୍ୟଦକ୍ଷତାରେ ଦରବାରର ସମସ୍ତ ପଣ୍ଡିତ ତଥା ସ୍ୱୟଂ ନାନାସାହେବ ଆଚମ୍ବିତ ହୋଇଗଲେ । ତାଙ୍କର ବିନା ପରାମର୍ଶରେ ନାନାସାହେବ ଆଉ କୌଣସି କାମରେ ହାତ ଦେଲେ ନାହିଁ । ଏଭଳି ଜଣେ ଯୋଗ୍ୟ ପୁରୁଷଙ୍କୁ ନିଜର ପରାମର୍ଶ ଦାତାଭାବେ ପାଇ ନାନାସାହେବ ତଥା ତାଙ୍କର ଦରବାର ନିଜକୁ ଧନ୍ୟ ମନେ କରୁଥିଲେ ।

ଏହି ସମୟରେ ଗୋଟିଏ ଘଟଣା ଘଟିଲା ଯାହା ଫଳରେ ଇଂରେଜ ସରକାର ପ୍ରତି ନାନାସାହେବ ଓ ତାଙ୍କ ପରାମର୍ଶଦାତାଙ୍କର ବିଦ୍ୱେଷ ଅଧିକ ତୀବ୍ର ହୋଇଉଠିଲା । ଘଟଣାଟି ଏଇଆ । ୧୮୫୧ରେ ପେଶବା ବାଜିରାଓ ଦ୍ୱିତୀୟ ପ୍ରାଣତ୍ୟାଗ କଲେ । ମୃତ୍ୟୁ ପୂର୍ବରୁ ସେ ଇଂରେଜ କମ୍ପାନୀ ହାତରେ ରାଜ୍ୟ ଅର୍ପଣ କରି ଆଠ ଲକ୍ଷ ଟଙ୍କା ପେନ୍‌ସନ୍ ପାଉଥିଲେ । ନାନାସାହେବ ତାଙ୍କର ପୋଷ୍ୟପୁତ୍ର ଥିବାରୁ ସେ ଉକ୍ତ ପେନ୍‌ସନ୍ ପାଇବାକୁ ହକ୍‌ଦାର ନୁହନ୍ତି ବୋଲି ଇଂରେଜମାନେ ନିଷ୍ପତ୍ତି କଲେ ।

ଏହି ନିଷ୍ପତ୍ତି ବିରୋଧରେ ଆପତ୍ତି ଜଣାଇବାକୁ ନାନାସାହେବ ୧୮୫୪ରେ ତାଙ୍କର ପୂର୍ବୋକ୍ତ ପରାମର୍ଶଦାତାଙ୍କୁ ପ୍ରତିନିଧି ରୂପେ ବିଲାତ ପଠାଇଲେ ।

ନାନାସାହେବଙ୍କର ପ୍ରତିନିଧି ଲଣ୍ଡନରେ ପହଞ୍ଚି ଯୁକ୍ତି ଦେଖାଇଲେ ଯେ ବାଜିରାଓ ନିଜର ସମସ୍ତ ରାଜ୍ୟ ଇଂରେଜ କମ୍ପାନୀଙ୍କୁ ଅର୍ପଣ କରି ତାର ପ୍ରତିଦାନରେ ଏହି ଆଠ ଲକ୍ଷ ଟଙ୍କା ମାତ୍ର ପେନ୍‌ସନ୍ ପାଉଥିଲେ । ଯଦି ଏହି ପେନ୍‌ସନ୍ ବନ୍ଦ କରି ଦିଆଯାଏ, ତେବେ ତାଙ୍କ ରାଜ୍ୟ ଇଂରେଜ କମ୍ପାନୀ ଅଧୀନରେ କାହିଁକି ରହିବ ?



ଇଂରେଜ କମ୍ପାନୀ ତରଫରୁ ଯୁକ୍ତି ଦେଖାଯାଇଥିଲା ଯେ ବାଜିରାଓ ଯଥେଷ୍ଟ ଅର୍ଥ ସଞ୍ଚୟ କରି ଯାଇଛନ୍ତି । ସେଥିରେ ତାଙ୍କର ପରିବାର ସୁରୁଖୁରୁରେ ଚଳିଯାଇ ପାରିବେ ।

ସମସ୍ତ ପ୍ରକାର ଯୁକ୍ତି ସତ୍ତ୍ୱେ ଇଂରେଜ ସରକାର ଜବରଦସ୍ତ କ୍ଷମତା ପ୍ରୟୋଗ କରି ନିଜ ନିଷ୍ପତ୍ତିରେ ଅଟଳ

ରହିଲେ । ତଥାପି ନାନାସାହେବଙ୍କ ଦାବି ସପକ୍ଷରେ ସେ ଯେଉଁଭଳି ଯୁକ୍ତି ଦର୍ଶାଇଥିଲେ, ତାହା ଦ୍ୱାରା ତାଙ୍କର ସୁନାମ ଗୃହଠାରୁ ଆଡ଼େ ବ୍ୟାପିଗଲା ।

୧୮୫୭ରେ ଯେଉଁ ସିପାହୀ ବିଦ୍ରୋହର ସୂତ୍ରପାତ ହେଲା, ତାହା ଥିଲା ନାନାସାହେବଙ୍କର ସୁଦକ୍ଷ ପ୍ରତିନିଧି ଅଜିମୁଲ୍ଲା ଖାଁଙ୍କର ସୁଚିନ୍ତିତ ପରିକଳ୍ପନା । ଐତିହାସିକ-ମାନେ ମତ ଦିଅନ୍ତି ଯେ ଅଜିମୁଲ୍ଲା ଖାଁଙ୍କ ଚତୁରତାର ପଟାନ୍ତର ନାହିଁ । ତାଙ୍କ ଯୋଜନା ଅନୁସାରେ ଯଦି ମେ ମାସ ୩୧ ତାରିଖ ଦିନ ବିଦ୍ରୋହ ଆରମ୍ଭ ହୋଇଥା'ନ୍ତା, ତେବେ ଭାରତ ସ୍ୱାଧୀନତା ପାଇବାରେ ଏତେ ବିଳମ୍ବ ଘଟି ନ ଥା'ନ୍ତା । କହିବା ବାହୁଲ୍ୟ, ସିପାହୀ ବିଦ୍ରୋହର ଅନ୍ୟାନ୍ୟ ବୀରପୁରୁଷଙ୍କ ଭଳି ଅଜିମୁଲ୍ଲା ଖାଁଙ୍କୁ ଇଂରେଜ ସରକାରର ଫାଶୀଖୁଣ୍ଟରେ ଝୁଲିବାକୁ ହେଲା ।




ଜୟ ଅଜିମୁଲ୍ଲା— ଜୟ ହିନ୍ଦୁ ।

